# ଶ୍ରୀ ରଘୁନାଥ ଜଣାଣ

ଂ ଭକ୍ତକବି ଭକ୍ତଚରଣ ଦାସ

ଶ୍ରୀ ମାଗୁଣି ଦାଶ

# ଶ୍ରୀ ରଘୁନାଥ ଜଣାଣ

୰ ଭକ୍ତକବି ଭକ୍ତଚରଣ ଦାସ

—ପରିବେଷକ—
କବିସମ୍ରାଟ ବୁକ୍ ଷ୍ଟୋର
ରେଡ଼ିଓସ ରୋଡ଼
ଭଞ୍ଜନଗର-୭୬୧୧୨୬ (ଗଞ୍ଜାମ)

# ଶ୍ରୀ ରଘୁନାଥ ଜଣାଣ

ରଚନା

୰ ଭକ୍ତକବି ଭକ୍ତଚରଣ ଦାସ

ସଂପାଦନା ଓ ପ୍ରକାଶକ

ଶ୍ରୀ ମାଗୁଣି ଦାଶ

ଅବସର ପ୍ରାପ୍ତ ଜିଲ୍ଲା ଲୋକ ସଂପର୍କ ଅଧିକାରୀ

ଭଞ୍ଜନଗର, (ଗଞ୍ଜାମ)

ମୁଦ୍ରାକର

ରଘୁନାଥ ପ୍ରେସ୍

ବ୍ରହ୍ମପୁର-୨ (ଗଞ୍ଜାମ)

ମୂଲ୍ୟ

ଏକଟଙ୍କା ପଚଶ ପଇସା

# ଲେଖା ସମ୍ପର୍କରେ ପଦେ

ପ୍ରାଚୀନ ତାଳପତ୍ର ପୋଥି ସଂଗ୍ରହ କରି ପ୍ରକାଶ କରିବା ମୋର ଗୋଟିଏ ସଉକ । ଏହାଦ୍ୱାରା ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ପାଇଁ ମୁଁ କିଛି କରୁଛି ବୋଲି ମନରେ ଆତ୍ମ ସନ୍ତୋଷ ଲାଭ କରିଥାଏ । ଏଥି-ପୂର୍ବରୁ ମୁଁ "ଭଞ୍ଜବଂଶାନୁ ଚରିତ" ଓ "ଭଞ୍ଜବଂଶ ଓ ଗୁମସର ବିଦ୍ରୋହ" ନାମକ ଦୁଇଟି ଉପାଦେୟ ତାଳପତ୍ର ପୋଥି ସଂଗ୍ରହ କରି ପ୍ରକାଶ କରିଥିଲି । ଓଡ଼ିଶାର ସୁଧି ପାଠକ, ସାହିତ୍ୟିକ ଓ ସମାଲୋଚକ ମାନଙ୍କ ଦ୍ୱାରା ସେ ଦୁଇଟି ବହି ବେଶ ଆଦର ଲାଭ କରି ଥିବାରୁ ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି ।

ଶ୍ରୀ ରଘୁନାଥ ଜଣାଣ ଭକ୍ତକବି ଭକ୍ତଚରଣ ଦାସଙ୍କର-ଗୋଟିଏ ଅପ୍ରକାଶିତ ରଚନା । ତାଳପତ୍ର ପୋଥି ଖଣ୍ଡିକ ପାଇବା-ପରେ ଓଡ଼ିଶାର ବହୁ ସାହିତ୍ୟିକ, ସମାଲୋଚକ ତଥା ଶିକ୍ଷାବିତ୍-ମାନଙ୍କ ସହିତ ଲେଖା ସମ୍ପର୍କରେ ବହୁ ଆଲୋଚନା କରିଛି । ଅନୁସନ୍ଧାନରୁ ଜାଣିବାକୁ ପାଇଛି ଏହା ଏପର୍ଯ୍ୟନ୍ତ ଅପ୍ରକାଶିତ-ରହିଛି । ଏପରିକି ବହୁ ସାହିତ୍ୟିକ, ସମାଲୋଚକ ଭକ୍ତଚରଣ ଦାସ-ଙ୍କର ଏପରି ଏକ ଲେଖା ଅଛି ବୋଲି ଜାଣନ୍ତି ନାହିଁ ।

କବିତାଟି ପ୍ରକାଶ କରି ଲୋକ ଲୋଚନକୁ ଆଣିବା ମୋର-ପ୍ରଥମ କର୍ତ୍ତବ୍ୟ ଭାବି ଆଜି ତାହା ପ୍ରକାଶ କରିବାକୁ ଯାଉଛି । ଯଦି କେହି ଲେଖା ସମ୍ପର୍କରେ କିଛି ଜାଣନ୍ତି ମତେ ଜଣାଇଲେ ମୁଁ ତାହା ସାଦରେ ଗ୍ରହଣ କରି ସେମାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ସଂସ୍କରଣରେ ସେମାନଙ୍କ କଥା ଉଲ୍ଲେଖ କରିବି ।

ଲେଖାଟିର ଉତ୍କୃଷ୍ଟତା ସମ୍ପର୍କରେ ପାଠକ ମାନଙ୍କୁ କିଛି ସୂଚନା ଦେବା ପୂର୍ବରୁ ପ୍ରଥମେ ଭକ୍ତକବି ଭକ୍ତଚରଣ ଦାସଙ୍କୁ ପାଠକମାନଙ୍କ ନିକଟରେ ପରିଚୟ କରାଇ ଦେବା ଉଚିତ ହେବ ।

ଭକ୍ତକବି ଭକ୍ତଚରଣ ଦାସ ପୁରୀ ଜିଲ୍ଲା ବେଗୁନିଆଁ ନିକଟ ସାନପଦର ଗ୍ରାମରେ ୧୭୪୩ ମସିହା ରେ ଜନ୍ମ ଗ୍ରହଣ କରି ଦୀର୍ଘ ୮୫ ବର୍ଷ ଅତିବାହିତ କରିବା ପରେ ୧୮୨୮ ମସିହାରେ ଦେହ ତ୍ୟାଗ କରିଥିବା ଜଣାଯାଏ ।

କବି ଯୌବନାବସ୍ଥାରେ ବୈଷ୍ଣବ ଦୀକ୍ଷା ଗ୍ରହଣ କରିଥିଲେ । ଦୀକ୍ଷା ଗ୍ରହଣ ପୂର୍ବରୁ ତାଙ୍କର ନାମ ବୈରାଗୀ ଚରଣ ପଟ୍ଟନାୟକ ଥିଲା । ଦୀକ୍ଷା ଗ୍ରହଣ ପରେ ସେ ଭକ୍ତ ଚରଣ ଦାସ ନାମରେ ପରିଚିତ ହେଲେ । ଭଗବାନ ଭକ୍ତ ମାନଙ୍କର ଅନୁସରଣ କରୁ ଥିବାରୁ ସେ ନିଜକୁ ପ୍ରଥମେ ଭଗବତ୍ ଭକ୍ତ ମାନଙ୍କର ପାଦ ସେବକ ବା "ଚରଣ ଦାସ" ରୂପେ ମନେକରି ଭକ୍ତି ବଳରେ ବିଷ୍ଣୁସାନିଧ ଲାଭ କରିବାକୁ ପ୍ରୟାସୀ ହୋଇଥିଲେ । ଭକ୍ତ ଚରଣ ନାମର ସାର୍ଥକତାରେ ତାଙ୍କର ଅଲୌକିକ ବ୍ୟକ୍ତିତ୍ୱ-ପ୍ରତିଫଳିତ ହୋଇଥିବା ଜଣାଯାଏ । ଓଡ଼ିଶାର ମଧ୍ୟ ଓ ପ୍ରାଚୀନ ଯୁଗର ବହୁ କବି ଧର୍ମଦୀକ୍ଷା ଗ୍ରହଣ କଲା ପରେ ନିଜ ନିଜର ପିତୃଦତ୍ତ ନାମ ବଦଳରେ ଭକ୍ତିସୂଚକ ଗୋଟିଏ ଗୋଟିଏ ନୂତନ ନାମରେ ପରିଚିତ ହୋଇଥିବା ଦେଖାଯାଏ। ଏପ୍ରକାର ନାମକରଣରୁ କବି-ମାନଙ୍କର ବ୍ୟକ୍ତିତ୍ୱର ପରିଚୟସୂଚକ, ଗଭୀର ଭକ୍ତିର ପ୍ରତିପାଦକ ଓ ମନୋବୃତ୍ତିର ପରିମାପକ ପ୍ରକାଶ ପାଇଥାଏ ।

କବି ନିଜ ଜନ୍ମ ସ୍ଥାନ ସାନପଦର, ସୁନାଖଳା, ଖୋର୍ଦ୍ଧା,

ବାଣପୁର ଓ ଦଶପଲ୍ଲା ଠାରେ ଧର୍ମପ୍ରଚାର ପାଇଁ ଗୋଟିଏ ଗୋଟିଏ ମଠ ପ୍ରତିଷ୍ଠା କରିଥିଲେ । ଉକ୍ତ ମଠ ଗୁଡ଼ିକ ଅଦ୍ୟାବଧି କବିଙ୍କ ଜୀବନବ୍ୟାପୀ ସାଧନାର ମୂକସାକ୍ଷୀ ରୂପେ ତିଷ୍ଠି ରହିଛି ।

କବି ଶେଷ ଜୀବନର କେତୋଟି ବର୍ଷ ରଣପୁର ଅନ୍ତର୍ଗତ ସୁନାଖଳା ଠାରେ ଅତିବାହିତ କରିଥିଲେ । କଥିତ ଅଛି ମୃତ୍ୟୁର ଆଠ ଦିନପୂର୍ବରୁ ସେ ସୁନାଖଳା ମଠରୁ ବାହାରି ସଂକୀର୍ତ୍ତନ କରି କରି ପୁରି ଧାମରେ ଯାଇ ପ୍ରବେଶ କରିଥିଲେ । ସେଠାରେ ଦୁଃଖିଶ୍ୟାମ ମଠରେ ଉଚ୍ଚ କୀର୍ତ୍ତନ କରୁ କରୁ କାର୍ତ୍ତିକ ଶୁକ୍ଳ ଏକାଦଶୀ ତିଥିରେ ତାଙ୍କର ମହା ପ୍ରୟାଣ ହୋଇଥିଲା ।

ଭକ୍ତକବି ମଥୁରା ମଙ୍ଗଳ, ମନବୋଧ ଚୌତିଶା, କଳା-କଳେବର ଚୌତିଶା ପ୍ରଭୃତିର ରଚୟିତା ଭାବରେ ଉତ୍କଳର ଘରେ ଘରେ ସୁପରିଚିତ । ଏବେମଧ୍ୟ ଆମର ବୁଢ଼ା ମାନଙ୍କ ମୁଖରୁ "କହଇ ମନ ଆରେ ମୋ ବୋଲ କର, କଳା ଶ୍ରୀମୁଖ ବାରେ ଦେଖିବା ଚାଲ" ଅଜ୍ଞାତ ସାରରେ ମଧ୍ୟ ବାହାରି ପଡ଼େ । କବିଙ୍କୁ ଯଥାର୍ଥରେ ଗଣକବି କୁହାଯାଇ ପାରେ । ତାଙ୍କର ଲେଖାର ଉତ୍କୃଷ୍ଟତା ସମ୍ପର୍କରେ ଓଡ଼ିଶାର ସୁଧି ପାଠକମାନେ ଭଲଭାବେ-ସୁପରିଚିତ ।

ଉପରୋକ୍ତ ଲେଖା ଗୁଡ଼ିକ ଛଡ଼ା କବିଙ୍କର ଆଉ କେତୋଟି ଅପ୍ରକାଶିତ ରଚନା ରହିଛି । ସେଗୁଡ଼ିକ ମଧ୍ୟରେ "ଶ୍ରୀ ରଘୁନାଥ ଜଣାଣ" ଅନ୍ୟତମ । ଏହା ଏକ ଉତ୍କୃଷ୍ଟ ରଚନା । କବି ଜାନକୀ ବଲ୍ଲଭଙ୍କ ଚରଣାରବିନ୍ଦରେ ଯେପରି ଭକ୍ତି ପୁଷ୍ପ ଅର୍ପଣ କରିଛନ୍ତି

ତାହା ପାଠକଲେ ଅନ୍ତରରେ ଅପୂର୍ବ ଭକ୍ତିପୁଲକ ଜାତ ହୋଇ-ଥାଏ ।

କେଶୀଟି 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଚୌତିଶା ନିୟମରେ କାମୋଦ ରାଗରେ ଲିଖିତ ଏକ କ୍ଷୁଦ୍ର କାବ୍ୟ । ଏହାର ପ୍ରତି ପଦରେ ଯମକ ଓ ଶୃଙ୍ଖଳା ପୂରି ରହିଛି । ପ୍ରଥମ ପଂକ୍ତି ଯେଉଁ ପଦରେ ଶେଷ ହେଉଅଛି ଦ୍ୱିତୀୟ ପଂକ୍ତିର ଆରମ୍ଭ ସେହିପରି ଏକପଦରୁ-ହୋଇଅଛି । ପ୍ରତି ପଦର ଅର୍ଥ ଭିନ୍ନ ଭିନ୍ନ ବୋଧକ ହେଉଅଛି । ପାଠକ ମାନଙ୍କ ଅବଗତି ପାଇଁ ନିମ୍ନରେ କେତୋଟି ପଦର ଉଦାହରଣ ଦିଆଗଲା ।

'କ' ଅକ୍ଷର ନିୟମରେ କବି ଲେଖିଛନ୍ତି:—

କାଣ୍ଡ କୋଦଣ୍ଡ ଧର ଧରଣୀ ସୁତାବର
ବରଜ ଦମ୍ଭ ମନୁ ମୋର
କହୁଛି ଯୋଡ଼ି କର କର ହେ ତତପର
ପରମ ମଙ୍ଗଳ ମୋହର ହେ
କଞ୍ଜନେତ୍ର ।
କରୁଣା ନିଧି ନିଧି ବନ୍ତ
କୋଟି କନ୍ଦର୍ପ ଦର୍ପ ଜିତ
କାହାକୁ ଦେଉ ଲକ୍ଷ ଲକ୍ଷ ଅରକ୍ଷ ରକ୍ଷ
ରକ୍ଷଣେ ହେବ ଅନୁଚିତ ହେ ।।

ଜଡ ସଂସାର ରୂପ ବନ୍ଧନରୁ ମୁକ୍ତି ପାଇବା ପାଇଁ ପ୍ରଭୁଙ୍କ ଚରଣରେ ନିଜର ଅନ୍ତରର ବେଦନା ଓ କୋହ ପ୍ରକାଶ କରି ଲେଖିଛନ୍ତି ।

ଖଣ୍ଡିବ ମୋ ବିପତ୍ତି ।   ପଙ୍କ୍ତିକ ସୀତାପତି
ପତିତ ଯେଣୁ ମୁଁ ହୋଇଛି

× × × ×

ଗୋଚର କର କର ମୁହିଁ
ଗଲ ମୋ ତନୁ ତନୁ ହୋଇ
ଚର୍ବିବକୁ ଏଥର   ଥରକ ଦୟାପରେ
ପର ସନ୍ଦେହେ ଦିଅ ଚୁହିଁ ହେ   । ଇତ୍ୟାଦି

× × × ×

'ଡ' ଅକ୍ଷର ନିୟମରେ କବି ଲେଖିଛନ୍ତି:—

ଡାକୁଛି ନିରାଧାର   ଧାରଣା ଜଗତର
ତରସ୍ତ ମୁହିଁ ହୋଇ କର
ଡେରୁ ନାହିଁ ଶ୍ରବଣ   ବଣବାସୀ କୃପଣ
ପଣଟି ଦଣ୍ଡିବ ଭୁମ୍ଭର ହେ
ଡାଳାସନ ।
ଡାକେ ଯେ ରାମ ରାମ ବୋଲି ।
ଡର ବିନାଶ ନାଶ କାଳ ॥
ଡେରୁ ନାହିଁ ଶ୍ରବଣ   ବଣବାସୀ କୃପଣ
ପଣଟି ଦଣ୍ଡିବ ଭୁମ୍ଭର ହେ ॥

ଏଥିରେ ତୃଷ୍ଣାପୁ ଧାଡ଼ି ଓ ଶେଷ ଦୁଇଧାଡ଼ି ଏକାପରି ହୋଇଅଛି । ଏଥିରୁ ଅନୁମିତ ହୁଏ ତାଳପତ୍ରରେ ଯେଉଁ ବ୍ୟକ୍ତି ଉତାରୁ ଥିଲେ ସେ ବୋଧହୁଏ ଶେଷ ଧାଡ଼ିଟି ଛାଡ଼ି ଦେଇ ତୃଷ୍ଣାପୁ ଧାଡ଼ିକୁ ପୁନର୍ବାର ଉଲ୍ଲେଖ କରି ଦେଇଛନ୍ତି । ଆଉ ଦ୍ୱିଷ୍ଣପୁ ବହି ନଥିବାରୁ ତାକୁ ଦେଖିବା ସମ୍ଭବ ହେଲାନାହିଁ । ଯଦି ଭବିଷ୍ୟତରେ ଆଉ ଗୋଟିଏ ପୋଥି ମିଳେ ଉକ୍ତ ପଦଟି ସଂଶୋଧନ କରିବା ବାସନା ରହିଲା । ପାଠକ ମାନେ ଏଥି ପାଇଁ କ୍ଷମା ଦେବେ ।

ଇତି

ଭଞ୍ଜନଗର — ଶ୍ରୀ ମାଗୁଣି ଦାଶ

ସ୍ୱାଧୀନତା ଦିବସ — ସଂଗ୍ରାହକ

—):o:(—

ଅଥ ଶ୍ରୀ ଭକ୍ତ ଚରଣ ଦାସ ବୈଷ୍ଣବଙ୍କ ଚରିତ ଶୃଙ୍ଖଳା ଛନ୍ଦରେ ଅନୁବାଦିତ ଶ୍ରୀ ଅଯୋଧ୍ୟା ନାୟକ ଶ୍ରୀ ରଘୁନାଥ ମହାପ୍ରଭୁଙ୍କ ଜଣାଣ ଲିଖ୍ୟତେ ।

ରାମଂ ଲକ୍ଷ୍ମଣ ପୂର୍ବଜଂ ରଘୁବରଂ ସୀତାପତିଂ ସୁନ୍ଦରଂ
କାକୁସ୍ଥଂ କରୁଣା କରଂ ଗୁଣନିଧିଂ ବିପ୍ର ପ୍ରିୟଂ ଧାର୍ମିକଂ
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥ ତନୟଂ ଶ୍ୟାମଳଂ ଶାନ୍ତମୂର୍ତ୍ତିଂ
ବନ୍ଦେ ଲୋକାଭିରାମଂ ରଘୁକୁଳ ତିଳକଂ ରାଘବଂ ରାବଣାରିଂ ।।

ରାଜୀବ ନେତ୍ର ରଘୁବଂଶ ତିଳକଂ
କୌଶଲ୍ୟା ନନ୍ଦନଂ ରାମ ।
ଦଶ ବଦନ ନିଧନ କାରୀ
ଦାଶରଥି ପୁଣ୍ଡରୀକାକ୍ଷ ।।

ଶ୍ରୀ ସୀତା ରାମାଭ୍ୟାଂ ନମୋ ନମଃ ।

ଲିଖିତ ତାଳପତ୍ର ପୋଥିର ଦ୍ୱିତୀୟ ପୃଷ୍ଠାରେ ପାଞ୍ଚଟି ଚିତ୍ର ଖୋଦିତ ହୋଇଅଛି । ବାମଭାଗରେ ସୁଗ୍ରୀବ ଓ ତାଙ୍କ ଆଗରେ ହନୁମାନ ଯୋଡ଼ ହସ୍ତରେ ଉପବେଶନ କରି ଅଛନ୍ତି । ସମ୍ମୁଖ ଭାଗରେ ରାମଚନ୍ଦ୍ର, ସୀତା ଏବଂ ଲକ୍ଷ୍ମଣ ସିଂହାସନୋପରେ ଉପବେଶନ କରି ଅଛନ୍ତି । ଚିତ୍ରଟିର ଫଟୋଚିତ୍ର ଦେବା ସମ୍ଭବ ହୋଇନାହିଁ । ପରବର୍ତ୍ତି ସଂସ୍କରଣରେ ଫଟୋଗ୍ରାଫଟି ଦେବା ପାଇଁ ଚେଷ୍ଟା କରିବୁ ।

ବାମେ ଭୂମି ସୂତା ପୁରସ୍ତୁ ହନୁମାନ୍ ପଶ୍ଚାତ୍ ସୁମିତ୍ରାସୁତାମ୍
ଶତ୍ରୁଘ୍ନ ଭରତଶ୍ଚ ପାର୍ଶ୍ୱେ ଯୁଗଳେ ବାୟୁଦୁତ ମାରୁତ୍ରାଂ ।।
ସୁଗ୍ରୀବଶ୍ଚ ବିଭିଷଣଶ୍ଚ ଯୁଗଳଂ ତାରସ୍ୱତ ଜାମ୍ବବାନ୍ ।
ମଧ୍ୟେ ନୀଳ ସରୋଜ କୋମଳ ରୁଚିଂ ରାମଂ ଭଜେଶ୍ୟାମଳଂ ।।

ଶ୍ରୀ ସୀତାରାମ ଶରଣଂ ହରିଃ ଓଁ ପରମାତ୍ମନେ ନମଃ ।

## ଲେଖକଙ୍କର କେତୋଟି ସୃଷ୍ଟି

ପ୍ରେମର ପରିଣାମ ( ଉପନ୍ୟାସ )

କର୍ଣ୍ଣଧାର ଭାବନା ( ଜେଲ ଭିତରେ ଲେଖା କେତୋଟି କବିତା )

ରସିକାନୁଚନ୍ଦ୍ରା. ( ୬ ଉପେନ୍ଦ୍ର ଭଞ୍ଜ ) ସଂଗ୍ରହ

ଗୋପବନ୍ଧୁ ସ୍ମୃତି ( କବିତା )

ଫୁଲବାଣୀର କନ୍ଧ ସଂସ୍କୃତି ( ରେଡ଼ିଓରେ ପ୍ରଚାରିତ ପ୍ରବନ୍ଧ )

ଭଞ୍ଜବଂଶ ଓ ଗୁମସର ବିଦ୍ରୋହ ( ତାଳପତ୍ରରୁ ସଂଗୃହିତ )

ଭଞ୍ଜବଂଶାନୁ ଚରିତ — ( ତାଳପତ୍ରରୁ ସଂଗୃହିତ )

ପ୍ରକାଶ ଅପେକ୍ଷାରେ

ଘୁମୁସର ଇତିହାସ

ଓଡ଼ିଆ ସାହିତ୍ୟକୁ ଖଡ଼ିଆଳର ଦାନ ।

ସ୍ମୃତି ଏବଂ କୀର୍ତ୍ତି. (ବିଭିନ୍ନ ପତ୍ରିକାରେ ପ୍ରକାଶିତ ଆଲୋଚନା ମୂଳକ ପ୍ରବନ୍ଧ ସଂଗ୍ରହ )

ଦ୍ରୌପଦୀ ଭୂଷଣ. ( ୬ ଧନଞ୍ଜୟ ଭଞ୍ଜଙ୍କ ଅପ୍ରକାଶିତ ରଚନା )

ଅନୁସନ୍ଧାନ କରନ୍ତୁ

**କବିସମ୍ରାଟ ବୁକ୍ ଷ୍ଟୋର** । ଭଞ୍ଜନଗର (ଗଞ୍ଜାମ),

କଟକ ବ୍ରହ୍ମପୁରର ବଡ଼ ବଡ଼ ବହି ଦୋକାନ-

# ଶ୍ରୀ ରଘୁନାଥ ଜଣାଣ

[ ରାଗ କାମୋଦ ]

କାଣ୍ଡ କୋଦଣ୍ଡ ଧର ଧରଣୀ ସୁତାବର
ବରଜ ଦମ୍ଭ ମନୁ ମୋର
କହୁଛି ଯୋଡ଼ି କର କହୁଛେ ତତପର
ପରମ ମଙ୍ଗଳ ମୋହର ହେ ।।
କଞ୍ଜ ନେତ୍ର !
କରୁଣା ନିଧି ନିଖିଳ କାନ୍ତ ।
କୋଟି କନ୍ଦର୍ପ ଦର୍ପ ଜିତ ।
କାହାକୁ ଦେବ ଲକ୍ଷ ଲକ୍ଷ ଅରକ୍ଷ ରକ୍ଷ
ଇକ୍ଷଣେ ହେବ ଅନୁଚିତ ହେ ।। ୧ ।।
ଖର ଆଦି ଅସୁର ସୁରଙ୍କ ପ୍ରାଣହର
ହରଷଣ୍ଟ (୧) ରେ ମୁଁ କହୁଛି ।
ଖଣ୍ଡିବ ମୋ ବପତ୍ତି ପତ୍ନୀକ ସୀତାପତି
ପତିତ ଯେଣୁ ମୁଁ ହୋଇଛି ହେ ।
ଖଳାନ୍ତକ ।
ଖେଦ ବାରଣ ରଣ ଧୀର ।
ଖଡ଼ଗ ଧର କର ଦୂର ।।
ଖରେ ମୋର ବୃଜନ (୨) ଜୀର୍ଣ୍ଣ ନୁହଇ ପୁନ
ପୁନର୍ପି ବଢ଼େ ନିରନ୍ତର ହେ ।। ୨ ।।

---

(୧) ନିରନ୍ତର । (୨) ପାପ ।

ଗଉତମ ସୁଶୀଳା ଶିଳା ଯେ ହୋଇଥିଲା
ଥିଲା ଅପାର କାଳୁପଣ୍ଡ଼ ।
ଗୋସାଇଁ କ ନଜଲ କଲମସ ଚଞ୍ଚଳ
ଚଳାପାଙ୍ଗୀର ଦେଲ ଏଡ଼ିହେ ॥
ଗୁଣେଗ୍ରାହ୍ୟ ।
ଗୋଚର କଷ୍ଟ କର ମୁହିଁ ।
ଗଲ ମୋ ତନୁ ତନୁ (୧) ହୋଇ
ଗଣ୍ଡବକୁ ଏଥର ଥରକ ଦୟାପର
ପରସନେ ହେ ଦଅ ଗୃହିଁ ହେ ॥ ୩ ॥
ଘୋଷୁଥାଇ ମୁଁ ବସି ବସିଣ ଅହର୍ନିଶୀ
ନଶିବା ଶମନେ ମୋହର ।
ଘୋର ବନେ ଶବସ୍ତ ବଣ ଭୁମ୍ଭଙ୍କୁ ହରି
ହରିଲା ଶଉକୁ ଭୁମ୍ଭର ହେ ॥
ଘନଶ୍ୟାମ ।
ଦେଇ ଉଗଣ୍ଡ (୨) ଗଞ୍ଜିକଲ ।
ଘନେ ମାକନ୍ଦ (୩) କନ୍ଦମୂଳ ॥
ଘୃଣା ତେଜି କବଳ ବଳତ କାରେ କଲ
କଳପ ତରୁ ମାର ଫଳ ହେ ॥ ୪ ॥
ନାଗ ଲୋକ କନ୍ନର ନର ଆଦ୍ଧ ଅସୁର
ସୁରରେ କେ ହୋଇବ ସର ।

---

(୧) କ୍ଷୀଣ (୨) ଭକ୍ତ (୩) ଆମ୍ର

ନାହିଁ ପର ଅପର  ପରମାନନ୍ଦଙ୍କର
କର ଏ ଭବାର୍ଣ୍ଣବୁ ପାରତେ ।

ନବମସ୍ତୁ ।

ନିରଞ୍ଜନ ଜନରେ କେଣ୍ଟି ।
ନଥିବେ ଥିବେ ଅବା କାହିଁ ।
ନରକ ମୋହ ଭୁଲ  ଭୁଲ ହେ ତତକାଳ
କାଳାଭ୍ରକାନ୍ତି ରଘୁସାଇଁ ହେ ।। ୫ ।।

ଚେତୁଛି ଦିନୁ ଦିନ  ଦିନବନ୍ଧୁ ସଜ୍ଜନ
ଜନଙ୍କ ସ୍ୱତେ ଜଣ ମିଛ ।।
ଚର ଅଚର ଯିବ  ଜୀବନ ସୀତାଧବ
ଧବ ସବୁରି ବୋଲଉଛ ହେ ।

ଚନ୍ତ୍ରାମଣି ।

ଚିତ୍ତରେ ଭାବ ଭାବ ଜତ
ଚିନ୍ତା ଲଭିଲ ଭିଲମିତ (୧)
ଚିତ୍ତ ମୋ ନୋହେ ଥିର  ଥିର କେମନ୍ତେ କର
କରନ୍ତି ନାମ ଉଚ୍ଚାରିତ ହେ ।। ୬ ।।

ଛାଡ଼ିଲି ସାଧୁ ସଙ୍ଗ  ସଙ୍ଗ କଲି କୁସଙ୍ଗ
ସଙ୍ଗର ଅନୁକମ୍ପ (୨) ଏବେ ।
ଗୁର ମୋର ଅଧିକ  ଧିକ ହେଉ ଯେତେକ
ତର୍କଣା ନୋହିଲା ନ ଯେବେ ହେ ।।

ଛନ୍ଦଧାରୀ ।

---

(୧) ଶବର ମୈତ୍ର (୨) କହିବାର ନୁହେଁ !

ଘୁଡ଼ିଲେ ଜୀବ ଯିବ କାହିଁ ।
ଶୋଚନା (୧) ସତ୍ତ୍ୱ ସତ୍ତ୍ୱ ନାହିଁ ॥
ଛଛନ୍ଦେ କନ୍ଦବାର          ବାଉ ହେ ବିଶ୍ୱମ୍ଭର
ଭରଷା ତୁମ୍ଭ ପାଦ ଦୁଇ ହେ ॥ ୭ ॥
ଜଣାଥିବ ସକଳ          କଳପ ତରୁ ଭାଳ
ଭାଳରେ କି ଲେଖିଛୁ ବନ୍ଧୁ ।
ଜପ ତପ ଯତନ          ତନମନା ହୋଇଣ
ଇନ (୨) କେବେ ମୁଁ ନକରଇ ହେ ।
ଜଗବନ୍ଧୁ ।
ଜୀବନ ବନଜାକ୍ଷ ଜୀବ ।
ଯମ ଦୁର୍ଦ୍ଦଣ୍ଡ ଦଣ୍ଡ ଦେବ
ଜଣାଣ ପ୍ରଭୁ କଳି          କଳିମଳ ଆବଳି
ବଳକେ ଅଛି ଦଳି ଦେବ ହେ ॥ ୮ ॥
ହିଁନିବାସ ସୁନ୍ଦର          ଦର ନି ତାପ ହର
ହର କୋଦଣ୍ଡ କରେ ଧର ।
ହିଙ୍କି ଣ ଖଣ୍ଡ ଖଣ୍ଡ          ଖଣ୍ଡନ କଲ ଦଣ୍ଡ
ଦଣ୍ଡକେ ଚଣ୍ଡ କାଣ୍ଡଧାରି ହେ ।
ଟାଙ୍ଗି ବାସି ।
ଟଗଡ଼ି ଗର୍ବ ଖର୍ବ ମୋର ।
ଖାଡ଼ନ ଦେଲ ଦେଲ ଭାର ॥
ଟଟଁଗ ବାଜି ଯିବ          ଯିବ ଯବୁରି ଭାବ
ଭାବନା କର ସୁରେଶ୍ୱର ହେ ॥ ୯ ॥

---

(୧) ଶୋଚନା, (୨) ଶ୍ରେଷ୍ଠ, ଭଲ ।

ନବୀନ ଦୂର୍ବାଦଳ ଦଳନ ମନୋହାଜ୍ଜ୍ୱଳ
ଜଳଦ କାନ୍ତି ରୁଚି ଧର
ନୋହିବ କିଛୁ ଉଦାସ ଦାସକୁ କର ଦାସ
ଦାସ ବତ୍ସଳ ଶୀରବର ହେ ।
ନିର୍ବିକାର ।
ନୃପତି ପତି ହୋଇ ଯାରେ
ନାହିଁ କାମନା ମନା କରେ ॥
ନିରତେ ତୁମ ଦାସ ଦାସର ହେବି ଦାସ
ଦାଶରଥିଙ୍କ କହିବାରେ ହେ ॥ ୧୦ ॥
ଟାଳ ରାଜ ସମ୍ପତ୍ତି ପନ୍ତକ ସୀତାପତି
ପତିବ୍ରତାଙ୍କୁ ସଙ୍ଗେ ଧରି ।
ଠେକ ବନେ ବିହରି ହରିଲ କାଳ ହରି
ହରିଣ ମାଂସ ଗ୍ରାସ କରି ହେ ।
ଟାଣ ବାହୁ ।
ଠେକ ଅଶେଷ ଶେଷ କରି
ଟିକିଏ କିଏ କହିପାରି
ଠେକ କହୁଛି ବାହୁ ବାହୁଜ (୧) କୁଳ ରାହୁ
ରାହୁ ଦଶାରୁ କର ପାରି ହେ ॥ ୧୧ ॥
ଠୁଳ ହେଲି ମୋ ଚିନ୍ତା ଚିନ୍ତାମଣି ଅଚିନ୍ତା
ଚିନ୍ତା ଯେବେ ମୋହର ଯିବ ।
ଠାକୁର ସେବା କରି କରି ଯାଆନ୍ତି ମରି
ମରିବ କେ୍ୟାତି ଜିତ ଭାବହେ ।
ଠୁଳରୂପି ।

---

(୧) କ୍ଷତ୍ରିୟ ।

ଠେକରେ କରେ ପଗ୍‌ଧଣ୍ଠ
ଠୁଳେ ଜଞ୍ଜାଳ ଜାଲ ଘର ।
ଠେକୁରେ ଯେଣୁ କଲ                    କଳା ହଇ ଗଲ
ଗଲ ନାହିଁ ଦୁଃଖ ମୋହର ହେ । ୧୨ ।
ଡାକୁଛୁ ନଗଧାର                    ଧାରଣା କଟତର
ତରସ୍ତ ମୁହିଁ ହୋଇ କର
ଡେରୁ ନାହିଁ ଶ୍ରବଣ                    ବଣବାସୀ କୃପଣ
ପଣଟି ଦଶିବ ଭୃମୃର ହେ
ଡାକାସନ ।
ଡାକେ ଯେ ରାମ ରାମ ବୋଲ
ଡର ବିନାଶ ନାଶ ଭୂଳ
ଡେରୁ ନାହିଁ ଶ୍ରବଣ                    ବଣବାସୀ କୃପଣ
ପଣଟି ଦଶିବ ଭୃମୃର ହେ ।। ୧୩ ।।
ଢାଳେ ଗୁରୁଙ୍କ ଯାଗ                    ଜାଗ୍ରତ ହେଲ ଆଗ
ଆଗକୁ ଗଲ ରକ୍ଷାସୁଣୀ
ଢାଙ୍କିଣ ଶର କୂଳ                    କୂଳ ଆଦ୍ଦ ଦୁର୍ବଳ
ବଳରେ କଲ ରଘୁମଣି ହେ ।
ଢୋଳା ନେତ୍ର ।
ଢାଳେ ଯେ କାର୍ତ୍ତି କାର୍ତ୍ତି ଚନ୍ଦ୍ର
ଢାଳ କେ ଦେବ ଦେବ ଇନ୍ଦ୍ର ।।
ଢାଳ କହୁଛୁ ମୁଖ                    ସୁଖରେ ଦନ ପକ୍ଷ
ପକ୍ଷ ନ କର କଲ ଛନ୍ଦ ହେ ।। ୧୪ ।
ଆହେ ହେ ରଘୁନାଥ                    ନାଥ ହୋଇ ସାମର୍ଥ
ମନ୍ଥନ ନକଲ ମୋ କେଶ ।

ଅସୁନ୍ଦର ବଶିବ ଶିବ ନ କଲେ ଦେବ
ଦେବତା କଣବେଟି ହାସ ହେ
ଅଣାକାର
ଅବମା ବନ୍ଧତା କୁମାଶ
ଅସୁର ସୁର ନେଲ୍ ଢର ।।
ଆଣିଲ କର ରଣ ରଙ୍ଗ ଶ୍ରୀ ବଚକ୍ଷଣ
କ୍ଷଣକେ ତାଙ୍କୁ ଦେଲ ମାର ହେ ।। ୧୫ ।।
ତୁମେତ ମହା ଯୋଗୀ ଯୋଗୀର ଅନୁରାଗୀ
ରଗିଠକ ଅଛୁ ତୁମପର
ଛଳକେ ଦେଲ ମାଣ ମାରଚକୁ କପର
ପଞ୍ଚଷ୍କାର ରେ ଦଇଡାଣ ହେ
ତରଳାକ୍ଷ !
ତିଲୋକେ ଲୋକେ ଯେତେ ଛନ୍ତ
ତିଗୁଣ ଗୁଣ ଯନ୍ତ୍ରେ ଯନ୍ତ୍ରୀ ।।
ତିକାଳକୁ ଭୁଞ୍ଜନ୍ତ ଯନ୍ତକ କାଳନାସ୍ତି
ନାସ୍ତିକେ ହୋନ୍ତ ଗତାଗତ ହେ ।। ୧୬ ।।
ଥପ୍ ନୋହୁଛୁ ଚନ୍ଥ ଚନ୍ଦ୍ରହେ ସୀତାକାନ୍ତ
କାନ୍ତ ମୁଁ ତୁମକୁ କହୁଛୁ
ଥିତ ମୋତେ ନକଲ କଳହେ କଲବଲ
ବଳକ ଆଉ ମୋର ଅଛୁହେ
ଥୁଳରୁପୀ !
ଥଳଟି ଯେତେ ଯେତେ ଆଶ
ଥିତନ ହେଲା ହେଲା ନାଶ ।।

ଥିଲି କର୍ତ୍ତ ଆପଣ ପଣ ପଣ ସୁଜନ
ଜନର କର ନାହିଁ କସଦେ । ୧୭ ॥
ଦଶରଥ କୁମର ମରକତ ସୁନ୍ଦର
ଦର କ ଲଭିଲ ଚିତ୍ତରେ
ଦେଖି ମୋ ଦୁଃଖ ଭାର ଭର ଭର ହେବାର
କାରଣ ମୋହବାରୁ ବାରେ ହେ
ଦୟାନିଧି
ଦୁର୍ବଳ ବଳ ହୋଏ ରଜା
ଦକ ନଥାଇ ଥାଇ ମଜ୍ଜା ॥
ଦଣ୍ଡ ଧର ଛିଡର ଛାର କମାଣ ଧର
ଧରନ୍ତ ନାହିଁ ମନେ ଲଜ୍ଜା ହେ ॥ ୧୮ ॥
ଧଣ୍ଟ ଏ ଗୁମାନ ମାନସେ କଣି ଦାନ
ଘନବନ୍ଧୁଙ୍କ ହେବ ଦାଶ
ଧନୁକ ଶିରୋମଣି ମହିମା ତୁମେ ଜାଣି
ଜାଣିଜା କରୁଛ ନରଣ ହେ
ଧର୍ମପତ୍ତି
ଧୈର୍ଯ୍ୟ କେମନ୍ତେ ମନ୍ତ୍ରେ ଦେବ ।
ଧରବ ଜୀବ ଯିବ ଧ୍ରୁବ ॥
ଧରାଦ ତନପୁର ପୂର୍ଣ୍ଣ ଯିବ ମୋହର
ଦୂର କରୁଛି ହୀତାଧବ ହେ ॥ ୧୯ ॥
ନିରନ୍ତରେ ଆଶ୍ରଷ ଲକ୍ଷ କରୁଛ ଆଶ୍ମ
ଆସ ମୋ ଚରଣରେ ପଣ

ନରକରୁ ଉଦ୍ଧର          ଧରିବ ବୋଲି କର
କର ମୁଁ ଟେମନ୍ତ ସାହାସ ହେ
ନିଗମପୂ ।
ନିର୍ଦ୍ଧା ଦୟାନିଧି ହେଲ ।
ନିକର କର ଛାଡ଼ି ଦେଲ ।।
ନଷ୍ଟେ ମୁଁ ଗଲେ ସର          ସରିବ ତୁମ ଶିର
ଶିରଷ ତନୁ ରଘୁ ବାଳ ହେ ।। ୨୦ ।।

ପଦୁପାଦେ ତୁମ୍ଭର          ଭରଷା କରି ଘୋର
ଘୋର ସଙ୍କଟୁ ନିସ୍ତରିଲି ।
ପରର ସହୋଦର          ଦର ହାସେ ମୋହର
ହର ବରରେ କାଳଗଲି ହେ
ପରଂବ୍ରହ୍ମ ।
ପ୍ରପନ୍ନ (୧) ପୁନଃ ପୁନଃ କଲି ।।
ପ୍ରତିଦାନ ଧନକୁ ନେଲି ।।
ପରରୁ ତିରସ୍କାର          କାରଣ ହୋଇବାର
ବାର ମୁଁ କାହିଁରେ ନୋହିଲି ହେ ।। ୨୧ ।।

ଫିଟିବ ଭବ ଗଣ୍ଠି          ଗଣ୍ଠି କଲି ମୁଁ କଣ୍ଠି
କଠିନ କରି ତୁମ ନାମ ।
ଫିଟିଲି ନାହିଁ ମୋହ          ମୋହର ନଶି ଅହ
ଅହ ନାୟକ ବଂଶୀ ଗ୍ରାମ ହେ ।।
ଫଳଦାତା !

---

(୧) ଶରଣାପନ୍ନ

ଫେରୁଛି ମନ ମନ ଯାନ ।
ଫଳା ପଗଏ ଗପ୍ପେ ଢେନ ।।
ଫାଟିଲଣି କପାଳ        ପାଳନ୍ତେ ତଚ କାଳ
କାଳ ସ୍ୱରୂପୀ ଭଗବାନ ହେ ।। ୨୨ ।।

ବିଚିତ୍ର ଚିତ୍ର କୂଟ        କୂଟରେ ହେଲଷ୍ଟୁ ଠ
ଷ୍ଟୁଠ ପଙ୍କଜ ଚଞ୍ଚି ନେତ୍ର ।
ବସୁଧାରେ ବିହରି        ହରିଣାକ୍ଷୀ କ ଧର
ଧଣି ମୋଦକୁ ଦନ ଗଜ ହେ
ଖାରଦର ।
ବିଜ୍ଞାନ ଜ୍ଞାନ ଧ୍ୟାନେ ରସି ।
ବହୁତ ଢୋଷି ଘୋଷି ରୁଷି ।।
ବସିଥିଲେ ଅପାର        ପାର କଲ ସୁତର
ତରଳାସ୍ତରେ ବ୍ରହ୍ମରାଶି ହେ ।। ୨୩ ।।

ଭ୍ରାବେ ହୋଇଲ ମିତ୍ର        ମିତ୍ର ପୁତ୍ର ଅମିତ୍ର
ମିତ୍ର ଛଳରେ କଲ ବଧ
ଖର ସିନ୍ଧୁ କବନ୍ଧ        କନ୍ଧନ କଲ ମଧ
ମଧରେ କର ସେତୁବନ୍ଧ ହେ ।।
ଖାବଗ୍ରାନ୍ତି ।
ଖଣ୍ଡ ଟି ସୁଚ ଦେଲ ଥରେ ।
ଖଳ କପଟ ପରିଷ୍କାରେ ।।
ଭବାର୍ଣ୍ଣବ ଅପାର        ପାର ତୁରନ୍ତେ କର
କର ତ୍ରାସରେ ନିରନ୍ତର ହେ ।। ୨୪ ।।

ମତ୍ସମାଙ୍କୁ ବସ୍ତ୍ରାର          ତାଣବ ବୋଲିକରି
କରି ଯେ ଥାଇ ପ୍ରଭୁ ଆଶ ।
ମନେ ହୋଇ ଉପତ          ଶତ କମଳ ନେତ୍ର
ନେତ୍ରକୁ ନକର ପ୍ରକାଶ ହେ
ମହାବାହୋ ।
ମହତ ହତ ହୋଇ ଯିବ ।
ମନରେ ଭବ ଭବ ଦେବ ॥
ମୋର ନୋହିଲେ ବଶ          ବଂଶରେ ସୀତା ଇଶ
ଇଷତେ କଳଙ୍କ ଲଗିବ ହେ ॥ ୨୫ ॥

ଜଗତ ମନୋହର          ହରଷ ହୋଇ ହର
ହର ଘଟରେ ତୁମ ନାମ ।
ଜପି ହେଲେ ଅମର          ମରଣ ବୋଲି ବାର
ବାର ହୋଇଲା ତାରତମ ହେ
ଜଗନ୍ନିତ ।
ଜନମୁଁ ନମୁଛୁ ତୁମ୍ଭରେ ।
ଜଳପ ଲପ କର ଥରେ ॥
ଜନକର ଜାମାତା          ମାତା ସୋଦର ପିତା
ପିତା ହୋଇଲ ମୋ ପକ୍ଷରେ ହେ ॥ ୨୬ ॥

ରାଜୀବ ପଦ ନେତ୍ର          ନେତ୍ର କାଳରେ ନେତ୍ର
ନେତ୍ରକୁ କଣ ନଉଛୁଣି
ରହିଛୁ ଯୋଡ଼ି କର          କର କୃପାନକର

କର ମାଳକା (୧) କୂଳମଣି ହେ
ସବଣାର ।
ଉଦ୍ଭବ ଯଶ ଯଶ କାଶ ।
ରସା (୨) ଉପରେ ପରେ ଖଣ୍ଡ ॥
ଉଦ୍ଭବ ନାହିଁ କାଳ କାଳକୁ ମର୍ଦ୍ଦୀପାଳ
ପାଳନା କରିବ ବର୍ତ୍ତୁର ହେ ॥ ୨୭ ॥

ଲଙ୍କାରେ ଥିବା ମନ୍ଦ ମନ୍ଦ କଲୁ ସୁଛନ୍ଦ
ଛନ୍ଦ ନକର ପାରି କଲ
ଲଙ୍କାର ଦୈତ୍ୟ କୂଳ କୂଳ ଆନ୍ଦ ଚକ୍ରାଳ
କାଳ ସଦନ ଦେଖାଇଲ ହେ
ଲୋକଗୁରୁ !
ଲୋକେଶ (୩) କେଶଧର ମୋର ।
ଲୋକରେ କରେ ନାରଖାର ॥
ଲଲାଟର ଅକ୍ଷର କ୍ଷର ନୋହିଲ ମୋର
ମୋରକ ଦୋଷ ସର୍ବେଶ୍ୱର ହେ ॥ ୨୮ ॥
ବାଚ ସୁତ ଲକ୍ଷଣ କ୍ଷଣ ପ୍ରଭୁ ଲକ୍ଷଣ

କ୍ଷଣକେ ଲଙ୍କା ବିଧ୍ୱଂସିଲେ
ବାସଟି ବେନ କଳା କଳାରୁ ଦୁଇ କଳା
କଳା ନା ମାଜ ନୋହି ଥିଲେ ହେ
ଶାରଭଦ୍ର ।

(୧) ସୂର୍ଯ୍ୟ (୨) ପୃଥିବୀ (୩) ଯମ

ଏଭବେ ଭବେ ସର୍ବଦେବେ ।
ଏଲକ୍ଷ ଲକ୍ଷ ଗୁଣେ ହେବେ ।।
ବରାହ ଖର୍ବ ରାମ          ରାମ କୃଷ୍ଣାଦ୍ୟସମ
ସମର୍ଥ ନୋହିବେ ନୋହିବେ ହେ ।। ୨୦ ।।

ଶ୍ରୁତି ପୁରାଣ ନେତି          ନେତି ସ୍ତୁତି କରନ୍ତି
ରହିଏ ମହିମା ତୁମର
ଶେଷ ଲେଶ କପାଇଁ          ପାଇବେ ରଘୁ ସାଇଁ
ସାଇତି ଥାଅ କରଧର ହେ
ସନାତନ ।
ସର୍ବ ଅକ୍ଷର କ୍ଷର ପ୍ରାଣୀ ।
ସମସ୍ତ ଜୀବେ ଜୀବେ ପୁଣି ।।
ସେ କାଳେଂ କେ ନଥିବ          ଥିବ ତୁମ୍ଭ ପ୍ରଭାବ
ଭବ କେ ଥିବ ମନେ ଗୁଣି ହେ ।। ୩୦ ।।

ସମର କାଳେ ଲକ୍ଷ          ଲକ୍ଷ ବାନର ଋକ୍ଷ
ଋକ୍ଷ ପଡ଼ିଏ ତାଙ୍କ ତେଜ
ସର୍ବେ ହେଲେ ନିର୍ଜୀବ          ଜୀବ ଦାନକୁ ଯିବ
ଜୀବନ ଦେଲ ଦେବରାଜ ହେ
ସର୍ବାଧାର ।
ସଜ୍ଜନ ଜନ ଗଣ ଦେଖି ।
ସର୍ମେ ସୀତା ସୀତାଂଶୁ ମୁଖୀ ।।
ସୁଖାଇ ମୁଖ କଞ୍ଜ          କଞ୍ଜରେ ହେଲ ଗଞ୍ଜ
ଗଞ୍ଜରେ ତେଜ ଦେଲେ ଶିଖି ହେ ।। ୩୧ ।।

ସମସ୍ତ ମହାରାଜା ରାଜା ଆଉ ପରଜା
ରଞ୍ଜାଇ ତାହାଙ୍କର ମଜ୍ଜା
ସହସ୍ର କୋଟି ବାଜା ବଜାଇ ହେଲ ରାଜା
ରାଜାଏ ଲମ୍ଭୁ ଥିବେ ଲଜ୍ଜା ହେ
ସର୍ବେଶ୍ୱର ।
ସକଳ ଜନଙ୍କ ଭୁଲେ ।
ସ୍ୱୟମ୍ଭୁ ଦେବ ଦେବ ଥିଲେ ॥
ଶତ୍ରୁଘ୍ନ ସୁଭରତ ରତ ହୋଇଣ ବ୍ରତ
ବ୍ରତରଣକୁ କରୁଥିଲେ ହେ ॥ ୩୬ ॥

ହେମାଙ୍ଗୀ ବଇଦେହୀ ଦେହୀଙ୍କି ବନେ ଥୋଇ
ଥୋଇଲ ଅଙ୍କାର୍ତ୍ତି ସକଳ
ହରି ଋକ୍ଷ ବାନର ନର ଆଉ ଅସୁର
ସୁରପୁରକୁ ଘେନଗଲ ହେ
ହର୍ତ୍ତା କର୍ତ୍ତା ।
ହୋଇଛୁ ଦୁଃଖି ଦୁଃଖି ବନ୍ଧୁ ।
ହୁଅହେ କୃପା କୃପାସିନ୍ଧୁ ॥
ହୋଇଲି ନରାଧମ ଧର୍ମକୁ ଅଭିରାମ
ରାମ ଫିଟାଅ ଭବ ବନ୍ଧୁ ହେ ॥ ୩୭ ॥

କ୍ଷମତା ମହା ମତେ ମତେ ଦେବ କଅଁତେ
ଚନ୍ଦ୍ରେ ଭୂମ୍ଭଙ୍କୁ ମୋ ଚତ୍ତରେ

କ୍ଷୋଭିବା କାଳେ ଯିବ    ଯିବ ତୁମ୍ଭଣ ଠାବ
ଠାବ ନ ଦେବ ଆନ ଠାବ ହେ
କ୍ଷମାନିଧି ।
କ୍ଷାତ ହେଉଛୁ ଉଚିତାରେ ।
କ୍ଷଣଙ୍କ ଲେକ ଲେକ କରେ ॥
କ୍ଷୀଣ ହୋଇ ସଂଘାତ    ଘାତ ପାଇ ଭଙ୍କୃତ
ରତ ହୋଇଛି ତୁମ୍ଭ ପାରେ ହେ ॥ ୩୪ ॥

—)❊( —